# ଶ୍ରୀ ରଘୁନାଥଙ୍କ ଜଣାଣ

---

ଶ୍ରୀ ଅଭିମନ୍ୟୁ ପଟ୍ଟନାୟକ

ପ୍ରଣେତା ଓ ପ୍ରକାଶକ

*Printed by* R. N. Panda.

AT

**Deenabandhu Printing Works,**

Russellkonda.

1933.

ମୂଲ୍ୟ— ଗୃହ ପଇସା

# ଉତ୍ସର୍ଗ ପତ୍ର

ଏହି ଜଣାଣ ଖଣ୍ଡିକ ପରମ ଭାଗବତୋତ୍ତମ
ମୋହର ସ୍ୱର୍ଗୀୟ ପିତାଙ୍କ ନାମରେ
ଉତ୍ସର୍ଗ କଲି

ଅଭିମନ୍ୟୁ ପଟ୍ଟନାୟକ

# ନିବେଦନ

୧୮୫୪ ଶକାବ୍ଦ ପୌଷ କୃଷ୍ଣ ତ୍ରୟୋଦଶୀ ଦିନ (୨୫ । ୧୨ । ୧୯୩୨) ଶ୍ରୀ ଲଡୁବାବାଙ୍କ ଦର୍ଶନାର୍ଥେ ମୁଁ ଶରଣକୁଳ ଯାଇ ମୋହର ପ୍ରିୟ ବନ୍ଧୁ ଶ୍ରୀ ସୋମନାଥ ଦାଶଙ୍କ ଘରଠାରେ ଆତିଥ୍ୟ ନେଲି ଓ ସ୍ୱର-ରାଗିଣୀ-ବିଶାରଦ-ସୁଯୋଗ୍ୟ-ଭକ୍ତ ଶ୍ରୀ ବାଞ୍ଛଧର ଦାଶଙ୍କ ସାକ୍ଷାତ ଲଭି ତାହାଙ୍କ ପୁତ୍ର ଦାଶରଥୀ ଦାଶଙ୍କ ରଚିତ ଶ୍ରୀ ଲଡୁବାବା ଜଣାଣ ଖଣ୍ଡିକ ଉପହାର ପାଇ ଅତି ପ୍ରୀତ ହେଲି । ଶ୍ରୀ ରଘୁନାଥଙ୍କ ଜଣାଣ ଖଣ୍ଡିଏ ରଚନା କରିବାକୁ ମନ ବଳିଲା ; ପର ଦିବସ ଓଡଗାଁରେ ଶ୍ରୀ ଜୀଉଙ୍କ ଦର୍ଶନ କଲାବେଳେ କେତେକ ଆକସ୍ମିକ ଘଟଣା (୧୪, ୧୫ ପଦ ଦେଖ) ଅନୁଜ୍ଞା ସୂଚନାରୂପ ଗ୍ରହଣ କରି ଏହି ରଚନାରେ ପ୍ରବୃତ୍ତ ହେଲି । ଯତି, ଯମକ ପ୍ରତି ଦୃଷ୍ଟି ଥିବା ଲାଗି ସ୍ଥାନେ ସ୍ଥାନେ ସାହିତ୍ୟ ଦୋଷ ଥାଇ ପାରେ, ମାତ୍ର ସହୃଦୟ ପାଠକେ ଭକ୍ତି ପ୍ରତି ଦୃଷ୍ଟି ଦେଇ ନିଜର ସରଳ ହୃଦୟରେ ସେହି ତ୍ରୁଟି ମାର୍ଜ୍ଜନା କରିବେ ବୋଲି ଆଶା କରେ । ପୌରାଣିକ ବିଷୟରେ ମୋହର ସହଧର୍ମିଣୀଙ୍କ ମତ ନେଇଅଛି । ଏଣୁ ମୋହର ପ୍ରାର୍ଥନାରେ ତାହାଙ୍କର ଭାଗ ରହିଲା । ଏହି ପୁସ୍ତିକା ଯାହାଙ୍କ ପ୍ରେରଣାରେ ରଚନା କରାଗଲା ଉକ୍ତ ଜୀଉଙ୍କ ପଦ ଯୁଗଳରେ ଲକ୍ଷ-ତୁଳସୀ ସ୍ୱରୂପ ସମର୍ପଣ କରି ନିଜକୁ ଚରିତାର୍ଥ ମଣୁଅଛି ।

ବିଶମ୍ବଦ

ଲେଖକ

ଓଁ

ରାମ-ରାଘବ ରାମ-ରାଘବ ରାମ-ରାଘବ ପାହିମାଂ
କୃଷ୍ଣ-କେଶବ କୃଷ୍ଣ-କେଶବ କୃଷ୍ଣ-କେଶବ ତ୍ରାହିମାଂ

---

( ରାଗ —କାମୋଦୀ )

ନବଘନ ବରନ    ଶ୍ୟାମଳ ଅପଘନ
ନବ ଅମ୍ବରେ ଲୁଚନ୍ତିର
ନବ-ପଞ୍ଚଭୁବନ    ଜୀବରାଶି ପରାଣ
ନନ୍ଦା ପ୍ରଥା କେବଳ ସେହି ହେ
ନର ନାରୀଙ୍କ ବ୍ୟବହାର, ନରକ ଉଦ୍ଧାରଙ୍କ ପର
ନଯୋଗ କହିବାର    ନଶ୍ଚୟ ଦୋଷ ଘୋର
ନ କର ନିବାରଣ ତାହି ହେ ରଘୁନାଥ ।୧।
ସର୍ବ ନର-ଅମର    ଘଟରେ ଅଛପୁର
ତବ ବିହୀନ ନାହିଁ କେହି
ତୁରୁର ପିତା ମାତା    ହୋଇ ତୁରୁଙ୍କ ତନୁ
ରହିବା ବିଡ଼ମ୍ବନା କହି ହେ

---

ଲେଖକ ସ୍ୱାମିଙ୍କୁ ପୁଷ୍ୟମାସ ରାତ୍ରରେ ଦର୍ଶନ କଲା ବେଳେ ଚୋପଣି ଲାଗି ହୋଇଥିଲେ । ସେହି ଉପଲକ୍ଷେ ୧, ୨, ୩ ପଦ ବୋଲାଯାଇ ଅଛି ।

ଚିତ୍ତରେ ଥରେ ମାତ୍ର ହେଲ, ଚିଦାନନ୍ଦ ମୂରତି ସାକ୍ଷ
ଚରାଚରେ ପୂରଣ ଅଛନ୍ତି ଭଗବାନ
ବାହ୍ୱାନା କର କାହିଁପାଇଁ ହେ ରଘୁନାଥ ।୨।
ବିଶ୍ୱରେ ମନେ-ମନ ଶ୍ରୀଚରଣ ଦର୍ଶନ
ହୋଇଲେ ପାପି ମୁକ୍ତି ହେବ
ଲକ୍ଷ-ଲକ୍ଷ ଭକତ ତରି ଗଲେ ନିଶ୍ଚିତ
ବୈକୁଣ୍ଠ ହେବ ସ୍ଥାନାଭାବ ହେ
ହୃଦରେ ରହୁ ଏହି ଭାବ, ବିଭୁ ବିଭୂତି ନାଶଯିବ
ବିଳମ୍ବରେ ସରବ ବିଶ୍ୱାସ ତୁଟିଯିବ
ବିଧାତା ବୋଲି କେ ଡାକିବ ହେ ରଘୁନାଥ ।୩।
ଦଶାନନ-ନିଧନ- କାରଣ ତବ ଜନ୍ମ
ପୁରାଣ ପରା ରଟୁଛନ୍ତି
ଯା ଶ୍ରୀମୁଖ ଆଜ୍ଞାରେ ସର୍ବ ଜୀବ ବିଚରେ
କିପାଁ ସେ ଥିଲେ କଷ୍ଟ ସହି ହେ
ଛତ୍ରପୁରାଦି ଗୃହ ଜୀବ, ଦେଖି ପାଇବେ ସ୍ୱର୍ଗଠାବ
ଏ ହେତୁ ଅବତାର ବିଶ୍ୱାସ ମୋ ମନର
କେବଳ ମୁକ୍ତି ମୁକ୍ତି ସେହି ହେ ରଘୁନାଥ ।୪।
କାମୀର କାମ-ଦାନ ମାନୀର ମାନ-ଧନ
ରୋଗୀ ନିରୋଗୀ କର ପାର
ସର୍ବ ଶକତି ପୂର୍ତ୍ତି ଭକ୍ତି କେବଳ ଧେନ
ଅଭକ୍ତେ ରହି ଅତି ଦୂର ହେ

ଦ୍ୱିତୀୟ ସମାଜେ ମୁ ଜଣେ ଭକତ କ ବସ୍ତୁ ନ ଜାଣେ
ସଦା ଅନ୍ତଃ ଚକ୍ଷୁରେ ସତ୍ୱଗେ ଦେଖିବାରେ
ଜ୍ଞାନ-ଦର୍ପଣ ଗନ୍ତୁ ମନେ ହେ ରଘୁନାଥ ।୫।
୧ ଶିବ ଗୁଣ କୀର୍ତ୍ତନ- -ଉଦ୍ଦେଶେ ପଞ୍ଚାନନ
ବ୍ରହ୍ମା ହୋଇଲେ ଚତୁର୍ମୁଖ
ମାନବ କେଉଁପର ତବ ଧ୍ୟାନକୁ କର
ଅଟଳେ ରଖିବନ୍ତି ଲକ୍ଷ ହେ
ପାପ କୂପରେ ସତ୍ତୁଛଇ ଅଲ୍ପବ ପଲ୍ଲେ ଦଉଡର୍
ଖଣ୍ଡ ବଖଣ୍ଡ କର ମନ ନଏ ଓଟାର
ଦୀନକୁ ରଖ ସାହା ହୋଇ ହେ ରଘୁନାଥ ।୬।
ପଥେ ଗମିବା କାଳେ ପଥରରୁ ୨ ଛୁଇଁବାଲେ
ଜନମ କଲ ତ ଅପଣ
ମୋ ହୃଦ ପଥରରୁ ତୁହେଁ କରୁଛ ଗରୁ
ତରା ରହିବା କ କାରଣ ହେ
ପେଶ ଅମୃତମୟ ଶର, ନାଶ ମୋ ଦୁଷ୍ଟ ଅସୁର
ଦଶ-ବଦନ ନାଶି ଥୋଇଛ ଯଶରାଶି
ଏ ଛାର କଥା କ୍ଷପା ତର ହେ ରଘୁନାଥ ।୭।
ଗୁପତେ ବଳ ବାଳୀ ବଳ ଦେଇଣ ଦଳ
ଅଙ୍ଗଦେ ଅତତାୟୀ ହେଲ

---

୧ ଅପଣଙ୍କ ଗୁଣ କୀର୍ତ୍ତନ କରିବା ପାଇଁ ଶିବ ପଞ୍ଚମୁଖ ଓ ବ୍ରହ୍ମା ଚତୁର୍ମୁଖ ହେଲେ । ୨ ଅହଲ୍ୟା

ଶେଷ-ଶାୟୀ ମୋ ଅଙ୍ଗ        ତୁମ୍ଭେ ତ ସେହୁ ଭଙ୍ଗ
କପାଇଁ ଡର ଲୁଚଗଲ ହେ
ସରବଜ୍ଞାଣ ତ ଆପଣ, ଗରବ ନ କରେ ମୁଁ କ୍ଷଣ
ଦାସାନୁଦାସ-ଦାସ        ରହିଲେ ସହି କ୍ଳେଶ
ପ୍ରଭୁ ଅଯଶ ହେବ ଠୁଳ ହେ ରଘୁନାଥ ।୮।
ସତ୍ୟରେ ୧ ଚତୁର୍ବର୍ଗ        ସହଜେ ଦେଲ ସର୍ବ
ପ୍ରଭୁ ଯେ ହେତୁ ବ୍ରହ୍ମମନ୍ତ୍ର
ଶତକଢ଼ା ଶତକ        ଚନ୍ଦ୍ରବାରେ ସେବକ
ନୋହିଲେ ବତଳ ହୃଦୟ ହେ
ସତତ ୨ କଳ୍ମଷ ୩ କସ୍ମଳେ ହୀନ ଦନ-ବାହୃତ କରେ
ଅନୁକମ୍ପା ନ କଲେ        ଶେଷେ ଶମନ ବଳେ
ଦମନ କର ଦେବ ହେଲେ ହେ ରଘୁନାଥ ।୯।
ତ୍ରେତାରେ ଏାତା ହୋଇ        ସବ୍ରତା ବଣେ ଯାଇ
ଜନମି ମାୟା ପ୍ରକଟାଇ
୪ ତାଡ଼କାଦ-କଟକ        ବିଧ୍ୱଂସ କଲ ଏକା
ବାତ-ଅମ୍ବୁଜ ପୃଷ୍ଠେ ରହି ହେ
ଦକ୍ଷ-ସାଗର ବକ୍ଷେ ଗଲ, ଅଚଳ ଖା ରାକ୍ଷସ ମାରିଲ

---

୧ ସତ୍ୟଯୁଗରେ ଅସତ୍ୟ ନ ଥିବା ଲାଗି ଭକ୍ତ ଚତୁର୍ବର୍ଗ ଫଳ ସହଜେ ପାଇଲେ । ୨ ପାପ, ୩ ମଇଲାରେ, ୪ ତାଡକାଦ ରାକ୍ଷସ-ମାନଙ୍କର ଋଷିମାନଙ୍କ ଉପରେ ଯେ ଦ୍ୱେଷ ତାହା ଏକାକୀ ହୋଇ ନାଶକଲ ।

ଲକ୍ଷ ଦଶାନନର                    ବକ୍ଷ ବିଦାରିବାର
ଅକ୍ଷୟ ମେଘନାଦ ଭୁଲ ହେ ରଘୁନାଥ ।୧୦।
ଦ୍ୱାପରେ ଦ୍ୱାରବତୀ                    ପୁର ମଧ୍ୟେ ନୃପତି
ଅପଣ ହୋଇଣ ଥିଲ ତ
୧ ପାଣ୍ଡବାନୀକ-ଶିଖ-                    ୨ ଖାଣ୍ଡବର ଦାହକ
ଗାଣ୍ଡିବ-ଧାରୀ କଲ ଜିତ ହେ
ସମର ଅଠର ଦିବସ, ହୋଇଲେ ଅମର ହରଷ
ପାମର ୩ଦୁର୍ଯ୍ୟୋଧନ                    ଧନେ ଉନ୍ମତ୍ତ ମନ
ନ ଚହ୍ନି ହେଲଟି ନିହତ ହେ ରଘୁନାଥ ।୧୧।

୪ କଲି-ମଳ ଗହନ                    ହେବାରୁ ବନମାଳୀ
ଅବତାରକୁ ଗୁଣ୍ଟି ଭଲି
ବିଜୟ ଅଛ କରି                    ନବଦୁର୍ଗ ଭିତରି
ଓଡଗାଁ ନାମେ ପୁଣ୍ୟସ୍ଥଳୀ ହେ
ଭୂସୁତା ବାମ ପାର୍ଶ୍ୱରେ, ଶେଷ ଦେବତା ଅପରରେ
ଅଶେଷ ଜନ ଅଦ୍ଧି                    ନିଃଶେଷି ପାପରାଶି
ସେହ୍ଧା ସ୍ଥାନକୁ ତୋଷେ ଯେଁରେ ହେ ରଘୁନାଥ ।୧୨।

---

୧ ପାଣ୍ଡବ ସେନାରେ ପ୍ରଧାନ ।   ୨ ଖାଣ୍ଡବ ବନ ଯେ ପୋଡିଥିଲେ ଅର୍ଥାତ୍ ଅର୍ଜ୍ଜୁନ ।

୩ ଦୁର୍ଯ୍ୟୋଧନ ଧନମଦରେ ଆପଣଙ୍କୁ ହେୟଜ୍ଞାନ କରି ହତ ହେଲା ।
୪ (କଳିର ପାପ)

ମହିମା ବକ୍ତୁ ବନ କରେ ମୋହିତ ଜନ
ବହୁସ୍ୟଚ-ବତ ପ୍ରକାଶଇ
ମୁଖେ କହ କୁହଇ ଲକ୍ଷ ଗଖେ ଯେ କେହ
ସେହ ତ ନଶ୍ଚୟ୍ କାଣଇ ହେ
୧ ମୁଖେ ରଖିଣ ତବ ଗାନ, ସୁଖ ଦୁଃଖରେ କଏ ଦନ
ସାକ୍ଷ ମୋହର କେହ ଧର୍ମ ବକ୍ଷରେ ନାହିଁ
ଆକ୍ଷେପ ନୋହୁ ମନେ ଯେନ ହେ ରଘୁନାଥ ।୧୩।
ଦେଲ ପଦ୍ମ ପ୍ରସାଦ ହରଲ ଅପରାଧ
ବୋଲ ହୋଇଲ ମହାନନ୍ଦ
ଗେଲକୁ ମାଏ କଲ କୁହଇ ତାହା ଭଲ
ଭୁଲକୁ ହରେ ତବାନନ୍ଦ ହେ
୨ ମଣ୍ଟକୁ ୩ ଜଗସ୍ଥ ବାହାର, କଉ ଥାଉଛୁ ଚକ୍ରଧର
ଲୋକେ ମହିମା-ରାଶି ପ୍ରକାଶି ଦବାନଶି
ମୋ ସ୍ଥର ଗୁହାରକ ତର ହେ ରଘୁନାଥ ।୧୪।
ଅଦ୍ୟାଙ୍କ ଅଦରଣ ଅଦରେ କଲ ଛେଣ
ମୋଦ, ବ୍ଷଦ ନ ଜାଣଇ
ଅଦ୍ୟ ହୋଇଲେ ହିର ସଦ୍ୟ ହୋଇ ଅସ୍ଥିର
ପଦ୍ୟ କପାଇଁ ନ ସ୍ଫୁରଇ ହେ

---

୧ ମୁଖରେ ତବ ନାମ ଗାନ କରେ । ଏଥିକୁ ମୋର ସାକ୍ଷ ନାହିଁ । ଏଣୁ ଏହା ଆକ୍ଷେପ ନୋହୁ ।

୨ ହନୁମାନଙ୍କୁ, ୩ ପୂନର୍ଜନ୍ମବନ୍ଧନ

ଗଦ୍ଗଦସ୍ୱର ମୋର ଶୁଣ, ପଦ୍ୟ-ମାଳିକା ମୋ ୧ଭସାଣ
ଯଦ୍ୟପି ଦ୍ୱେଷ ତୁଚ୍ଛ    ହୃଦପଦ୍ମେ ରହିଛ
୨ ବିଦ୍ୟା-ଦେବୀଙ୍କୁ ଟାଣିଥାଅ ହେ ରଘୁନାଥ ।୧୫।
ସଦା ଚରଣେ ରହି    ସଦା ଚରଣ ଧ୍ୟାୟୀ

## ସଚ୍ଚିଦାନନ୍ଦଙ୍କ ଦର୍ଶନ

ସଲକ୍ଷ୍ମୀ ଲକ୍ଷ୍ମଣର    ସହ ହୃଦକନ୍ଦର
ଶେଷ ଭାଗରେ କରୁ ସ୍ଥାନ ହେ
ଶେଷ ଦେବତା ପାଶେ ରହି, ଅଶେଷ ଦୁରିତ ଯେ ଦହି
୩ ବି-ଶେଷ ହେଲେ ମହି    ବିଶେଷ କହିବାର
ବଣ ଭିତରେ ଯିବ ରହି ହେ ରଘୁନାଥ ।୧୬।
୪ ତ୍ରିଦିବରେ ତ୍ରିଦେବ    ତ୍ରିଗୁଣ ଛାଣ ଧ୍ରୁବ
ତ୍ରେତାଯୁଗରେ ଅବତର
ତ୍ରିମୂର୍ତ୍ତି ହୋଇ ରହି    ତ୍ରିଲୋକେ ଶ୍ରେଷ୍ଠ ସେହି
ସର୍ବସ୍ୱ ତାଙ୍କେ ଭକ୍ତି ରେଚ ହେ
୫ ତ୍ରିପୁରସୁରନାଶକାରୀ, ତ୍ରିନେତ୍ରେ ଦରଶନ କରି
ତ୍ରି ଭୁବନେ ପବିତ୍ର-    ଚରିତ୍ର-ଅଲଂକୃତ
କଚତ୍ର-ଗାତ୍ର ଛତ୍ରଧର ହେ ରଘୁନାଥ ।୧୭।

---

୧ ଭେଳକର, ୨ ସରସ୍ୱତୀଙ୍କୁ ।

ଉକ୍ତ ଦର୍ଶନ ସମୟରେ ଶ୍ରୀମହାଦେବଙ୍କ ମସ୍ତକରୁ ପୁଷ୍ପ ଦୁଇ ଗୋଟି ତଳେ ପଡିଗଲା, ପରେ ଦେବଙ୍କ କଣ୍ଠ ବସନରୁ ଗୋଟିଏ ପଡିଲା । ସେହି ଉପଲକ୍ଷେ ୧୪, ୧୫ ପଦ ଲେଖାଗଲା ।

୩ ଲକ୍ଷ୍ମଣଙ୍କ ବର୍ଜନ ୪ ସ୍ୱର୍ଗରେ, ୫ ମହାଦେବ ।

୧ ଗଉଡକୁ ଗରୁଡ଼- ଭକ୍ଷ କଲା ପାଉଡ଼
ଧଉପଉଡରେ ଦଉଡ଼ିଲା
ଗୋଡରେ ବାନ୍ଧି ଧଡ଼ ଯୋଡ଼ ବସନେ ଛଡ଼
ମାଉଣ କଣ୍ଠା ଖୁଣ୍ଟୁ ଗଲା ହେ
ଦୂତ ମୃତର ଜାଣିପାର, ଅଗରେ ଛିଡ଼ା ହେଲ ହର
ଯାଚଣ ବର ଦେଲ ଅଗିରେ ରକ୍ଷାକଲ
ତଥାରୁ ଉଦ୍ଧାର ପାଇଲା ହେ ରଘୁନାଥ ।୧୮।
୨ ଶୁଣିଅଛୁ କଦଳୀ- କାନ୍ଧି ଦେଖିଣ ବାଳୀ
ଆପଣେ ସମର୍ପିବ ବୋଲି
ବର-ବରନା-ବର ଚନ୍ଦ୍ରଲା ଦଗମ୍ବର
ହୋଇବେ ସେ ଫଳ ଆହାର୍ଯ୍ୟ ହେ
ମଧ୍ୟ ଦେଶରେ ଅହି ରହି, ବଞ୍ଚାଗ କଲା ପରା ତାହି

---

୧ ଅଳ୍ପକାଳ ପୂର୍ବେ ଏହି ଅଞ୍ଚଳରେ ଜଣେ ଗୌଡ଼କୁ ସର୍ପ ଦଂଶନ କଲା । ସେ ରଘୁନାଥଙ୍କୁ ସ୍ମରଣ କରି ଓଡଗାଁ ଦଉଡ଼ି ଦୌଡ଼ିଯିବାବେଳେ ଲଉଖାଲଠାରେ ଜଣେ ବୃଦ୍ଧ ବେଶଧାରୀ ବ୍ରାହ୍ମଣ ଅଗରେ ଛିଡ଼ା ହୋଇ ଗୋଡ଼ର ବନ୍ଧନ ଫିଟାଇବାକୁ ଆଦେଶ ଦେଲେ । ସେପରି କରି ଗୌଡ ଜ୍ୱାଳାଦି ବାଧାରୁ ମୁକ୍ତ ହେଲା । ଲେଖକ ଗୌଡ ମୁଖରୁ ଏ କଥା ଶୁଣି ଅଛନ୍ତି ।

୨ ଏହା ପ୍ରବାଦ ଜନରବ ନୁହେଁ । ଜଣେ ସ୍ତ୍ରୀ ନିଜ ବାଡ଼ିରେ ଥିବା କଦଳୀ କାନ୍ଧି ଶ୍ରୀ ରଘୁନାଥଙ୍କୁ ଦେବା ପାଇଁ ମନେକଲା । ତାହାର ଭର୍ତ୍ତା ତାହାର ଅଜ୍ଞାତରେ ଶ୍ରୀ ଲଡୁବାବାଙ୍କୁ ଦେବାକୁ ମନସ୍ଥ କଲା । ପରେ କଦଳୀ କାନ୍ଧି ମଝିରେ ସାପ ଗୋଟିଏ ଗୁଡ଼ାଇ ହୋଇ ରହିବା ଦେଖାଗଲା । ତଦନୁସାରୀ କଦଳୀ କାନ୍ଧି ବଣ୍ଟା ଗଲା ।

ହରି ହର ମୂରତି ଭେଦ ତ ନାହିଁ କିଛି
ଭାଗ ବାଣ୍ଟିଲ କାହିଁପାଇଁ ହେ ରଘୁନାଥ । ୧୯ ।

ଜନ୍ମସ୍ତେ ଜନକଜା ହେମା ମିଥିଳା-ରାଜା
୧ ମଝାରେ ହର ନାହିଁ ଦନ
ହଜାର ଜନ ଅଛ ଅମ୍ବୁଜ-ପଦ-ବ୍ରଜ
ମଝାରେ କରୁଛନ୍ତି ଧ୍ୟାନ ହେ ଜନକଜା
ଜୋର ନକରେ ମୁଁ ପାମର, ଜାର ୨ଗୌତମ ଭାମିନୀକାର
ଲକ୍ଷ୍ମା ଉଦ୍ଧାର ନେତ ଉଡାଇଛ ପୂର୍ବେ ତ
ଜଳଜ-ପଦେ ରହୁ ମନ ହେ ରଘୁନାଥ ।୨୦।

ଜୟ ରଘୁନନ୍ଦନ ରଘୁକୁଳ ବନ୍ଦନ
୩ ଅବନୀ-ସୁତା ପ୍ରାଣଧନ
୪ ଧନଦ-ସାନ-ସୁନୁ -ନିଧନକାରୀ-ସାନ-
-ଭ୍ରାତା ସହିତ ବଦ୍ୟମାନ ହେ
ମୁନିଗଣଙ୍କ ଧ୍ୟାନ ସ୍ଥାନ, ମୁଁ ନିପଟ ଅଧମ ହୀନ
ଜ୍ଞାନ କପଟେଠ ଜଡ ମନ୍ଦ ବୁଦ୍ଧିରେ ପଡ
କାଟି ନଥିଛ ଅବୁଦନ ହେ ରଘୁନାଥ ।୨୧।

ମୋ ମନ ଅଭିଜନ ତବ ଚରଣ ଧ୍ୟାନ
ଧନମାନରେ ଅଭୂଷଣ
ଅକିଞ୍ଚନ ଦେଖିଣ କାହିଁରେ କୃପା ୫ବନ
ସିଞ୍ଚାଇ ରଖ ଗୁଳ୍ମ ପ୍ରାଣ ହେ
ନଦାକୁ ଥରେ କର ଡର, ଛନ୍ଦାଇ ରଖ ଶ୍ରୀପଦ୍ମର

---

୧ ଧନୁସରେ, ୨ ଅହଲ୍ୟାର, ୩ ସୀତା ୪ କୁବେରଙ୍କ
ସାନଭାଇ ଅର୍ଥାତ୍ ରାବଣ, ତାହାଙ୍କ ମୃତ୍ୟୁ ଇନ୍ଦ୍ରଜିତ ! ୫ ଜଳ

କହାଉଥିଲେ ନିଛ                    ବଦନାରେ ଅପ୍ରୀଛ
୧ ଅନାଛ କପାଁ ନାହିଁ କର ତହ୍ନ ରଘୁନାଥ ।୨୨।
୨ ବାଲକାଳରେ ଟେର                    ବଲେ ମାରଇ୍ ନର
ବାଲା ବାଲକ ପୋଷେ ଧନେ
ବଲାଇ୍ ଦେଇ୍ ମନ                    ବଳରେ କାଟି ଦନ
ବଳିଷ୍ଟ ହେଲେ ଛପୋଧନେ ହେ
୩ଅବଲ ଗଲା ଦୂରହୋଇ୍, କାଲ ଛନ ସୁଙ୍କାଚା ହୋଇ୍
କଲପଣା କଥଲ                    କଲାମୁଖେ ବର୍ଣ୍ଣିଲା
୪କଲି-ଉଦ୍ଧାର-ବହୁ ଯେହ୍ନ ହେ ରଘୁନାଥ ।୨୩।
୫ ହସ୍ତି-ମସ୍ତକ-ଭାତ-                    ମାତ ଅତ୍ୟନ୍ତ ପ୍ରୀତ
ହୋଇ୍ ଗାଅନ୍ତ ତବ ୬ଗୀତ
ଧାତା କରତା ହୋଇ୍                    ବିପୁଟର ଶୁଣାଯାଇ୍
ଏହା ପ୍ରମାଣ ସୁନିଶ୍ଚିତ ହେ
ଉଭୟ୍ ଏକ ମୂର୍ତ୍ତିବତ, ଅନ୍ୟ ଅନ୍ୟ ଚନ୍ତ୍ର ନିତ୍ୟ
ଷିର ନର ମିଶ୍ରିତ                    କ୍ଷିତରେ ଝ୍ୟାତ ସତ୍ୟ
ଅଭେଦ ତନୁ ମୋର ତତ୍ ହେ ରଘୁନାଥ ।୨୪।
ନାରଦ ସୁବଖ୍ୟାତ                    ସୁଅଦର ହର୍ଷିତ
ବୀଣାଗୁଣକୁ ଟାଣେ ବାହୁ
ଛଣାନ୍ତ ତ ଛଗତ                    ଜାନକୀ ପ୍ରିୟ୍ ନାଥ
ଜୀବ ଜନ୍ତୁ ଉଦ୍ଧାର କଲ୍ଲ ହେ
ଛନମ-ଛନମେ ମୋ ଜୀବ, ଛଲଛ-ପଦେ କରୁଥାବ

୧ ଅନ୍ନପାନ,      ୨ ବାଲ୍ୟକାଳ ଉପଲକ୍ଷେ,      ୩ ସଂସାର ପାପ
୪ ରାମାୟଣ,   ୫ ଗଣେଶ,   ୬ ରାମାୟଣ

ଜନ୍ମ ଅପର ନୋହୁ ୧ ସାଯୁଜ୍ୟ ମୁକ୍ତି ପାଇଁ-
-ଯୋଗ୍ୟତା ଥରେ ଦିଅ କହୁ ହେ ରଘୁନାଥ ।୨୫।
୦କାମନା ମନେ କାର ରହୁବା ନିରଧାର
ନିଷ୍କାମ ହୋଇବା ଦୂରୂହ
ତୁମନେ ଥରେ ହେଜ ପାପ-କୂପ-ସହଜ
ପଡ ସତୃଷ୍ଟ ଦୟାବହ ହେ
ପାତକୀ ପାତକ ଯେତେକ, କୁଧା ବଦାରୁ ତାର ବୁକ
ନିଶା-ଦିବସ-ପଛ ରସାରେ ବିଚରନ୍ତି
ଅନୁଜ୍ଞା ଧରଣ ମସ୍ତକ ହେ ରଘୁନାଥ ।୨୬।
୨ ଅବନୀ- ୩ -ସୁନନ୍ଦନା ୪ଅବ୍ଜ-ଜାତ ବଦନା
ଅବନତ ଶ୍ରୀମୁଖ ହୋଇ
ଅବଗୁଣ୍ଠନ ଦେଇ ଅବୟବ ଘୋଡାଇ
ଅବଲାରୂପେ ଅଳ୍ପ ରହୁ ହେ ଜଗନ୍ନାଥ
ଅବଶେଷ ବିନଷ୍ଟ ଦେଖ, ଅବସର ସମୟେ ଶୁଣ
୫ ଅବତାରଣ କର ଅବହେଳା ଅଟଳ
ଅବସ୍ଥିତି ଅଭୂଷଣ ହେ ଜଗନ୍ନାଥ ।୨୭।
୬ ଶୁଣିଛୁ ତବ ତାତ ଅନ୍ଧସୁତ ନିହତ
କରି ହୋଇଲେ ପାପେ ଲିପ୍ତ

---

୧, ମୁକ୍ତି ବିଶେଷ, ୨ ସୀତା, ୩ ଚନ୍ଦ୍ରଙ୍କ କଳା, ୪ ସୀତା ଦେବୀଙ୍କ ଠାଣିକୁ ବୋଲାଯାଇ ଅଛି । ୫ ଠକାମି

୬ ଦଶରଥ ରାଜା ଅନ୍ଧମୁନୀଙ୍କ ପୁତ୍ରକୁ ହସ୍ତୀ ଭ୍ରମରେ ମାରିବାରୁ ମହାପାପୀ ହେଲେ । ସେ ବାମଦେବଙ୍କ ସମୀପକୁ ଯାଇ ଶ୍ରୀରାମ ମନ୍ତ୍ର ଗ୍ରହଣ କରି ପାପରୁ ମୁକ୍ତ ହେଲେ ।

ତବ ନାମ କେବଳ ସଦ୍ଗତ ହେବ ଫଳ
ଏ ଭବେ କଷ୍ଟେ ହେଲେ ତୃପ୍ତ ହେ
ବାମଦେବ ସମୀପ ଗଲେ, ରାମ ନାମକୁ ଦୀକ୍ଷା କଲେ
୧ ବୃଜିନ ଯାହାଥିଲା ନାମାଗ୍ନି ଦହି ଦେଲା
ମଘବା ପାରୁଣେ ବସିଲେ ହେ ରଘୁନାଥ । ୨୮ ।
୨ ଦେଲେ ତ୍ରିନାମ କାନେ ବଶିଷ୍ଠଙ୍କ ବଚନେ
ଗୁହ୍ୟକ ମ୍ଳେଚ୍ଛ ହେଲେ ଯାଇ
ତପସ୍ୟା ବିସର୍ଜନ ନରମାଂସ ଭକ୍ଷଣ
କଷ ରହିଲେ କଷ୍ଟ ସହି ହେ
ଗୋଟିଏ ନାମର ମହିମା, କୋଟି ଜନମ ୩ପାପଜମା
ଅବହେଳାରେ ହରେ ଯଥା କର୍ପାସ-ଘରେ
ଅଗ୍ନି-କଣିକା ହୋଇ ଜଣା ହେ ରଘୁନାଥ । ୨୯ ।
ଅଷ୍ଟାଙ୍ଗ ଯୋଗେ ଚହି କଷ୍ଟ ଅସୀମ ସହି
ନଷ୍ଟ କରନ୍ତି ପାପ କେହି
ଅବଶିଷ୍ଟ ୪ ତାପସ- ଶିଷ୍ଟାଗ୍ରେରେ ଦିବସ
କାଟନ୍ତି ଦୃଢ଼ ମନ ହୋଇ ହେ
ଭୂମିଷ୍ଠ-ଅଷ୍ଟାଙ୍ଗ ପ୍ରଣାମ, ଶ୍ରେଷ୍ଠ ଅଟଇ ଭବେ ମନ

---

୧ ପାପ

୨ ବାମଦେବ ଗୋଟିଏ ନାମ ଦେବା ବଦଳେ ତିନଥର ନାମ ଦେଇଥିବା ଲାଗି ନିଜ ଗୁରୁ ବଶିଷ୍ଠଙ୍କ ଶାପରେ ଗୁହ୍ୟକ ମ୍ଳେଚ୍ଛ ହେଲେ.

୩ ପାପଠୁଳ; ୪ ବ୍ରହ୍ମର୍ଷି

ତୁଷ୍ଟି ଲକ୍ଷ ନ ହୋଇ    ନିଷ୍ଠା ଅନ୍ତରେ ରହୁ
ତୁଷ୍ଟେ ରହିବା ସାଗ ଧେନ ହେ ରଘୁନାଥ ।୭୦।
କାର୍ଣ୍ଣ କୋଦଣ୍ଡ ହସ୍ତ    ପ୍ରକାଣ୍ଡ ବକ୍ଷ ସ୍ଥିତ-
-ହାସ ୧ ପୁଣ୍ଡରୀକ-ସଦନ
ମୁଣ୍ଡେ ଜଟା ଶୋଭିତ    ମୁକୁଟ ବମଣ୍ଡିତ
ଦଣ୍ଡ ଦଣ୍ଡରେ ସ୍ମରୁ ମନ ହେ
ବ୍ରହ୍ମାଣ୍ଡେ ମୋର ଘର ଜ୍ଞାନ- ୨ ଭଣ୍ଡନ ଦେଖିବ ନୟନ
ଚଣ୍ଡ ୩ ଉଷା-ତାପ    ପ୍ରଜ୍ଜ୍ୱଳ କରେ ପିଣ୍ଡ
ଲଣ୍ଡ ଭଣ୍ଡ ନୋହୁ ଏ କ୍ଷଣ ହେ ରଘୁନାଥ ।୭୧।
ମୋ ଅନ୍ତରେ ଅନ୍ତର-    ଅଗ୍ନିରୂପେ ବହର
ମନ୍ତର ତନ୍ତ୍ର ଜାଣେ ନାହିଁ
ଶାନ୍ତ ଦାନ୍ତ ଆପଣ    ସର୍ବ ବୃତ୍ତାନ୍ତ ଜ୍ଞାନ
କେମନ୍ତ ଚନ୍ତାକର ନାହିଁ ହେ ଚନ୍ତାମଣି
ଅନ୍ତେ କୃତାନ୍ତ ନେଲେ ଧରି, ନିତାନ୍ତ ନିନ୍ଦା-ଶୋଚବାର
ଏକ ପ୍ରାନ୍ତୁ ଅପର    ଅନ୍ତକୁ ଘୋଟିବାର
ଏକାନ୍ତ ନିନ୍ଦାସିବ ପୂର ହେ ରଘୁନାଥ ।୭୨।
ପଦ୍ମରୂପ ଜଣାଣ    ତବ କରୁଣା ଜାଣ
ପ୍ରେରକ ହୋଇଛ ଆପଣ
ଅନାଦର ନ ହେଉ    ସାଦରେ ଘେନାଯାଉ
ନ ହୁଅ ଏଥର କୃପଣ ହେ

---

୧ ପଦ୍ମ, ୨ ମୂର୍ଖ ଓଲୁ ୩ ସଂସାର ବାଧା

ଦର୍ଶନ କରୁ ମାତ୍ର ବେଳେ, ପିଣ୍ଡୁ ପ୍ରାଣ ଯିବା କାଳେ
୧ ଦଣ୍ଡକ-ହନ୍ତା-ଦଣ୍ଡ ଆକର୍ଷିଲେ ବ୍ରହ୍ମାଣ୍ଡ-
-ଈଶ୍ୱରପଦ ହେବ କ୍ଷୀଣ ହେ ରଘୁନାଥ । ୭୩ ।
ବୁଧ-ହୃଦ- ୨ ସଉଧ କର ନିରତ ୩ ସଧ
ଅଧର୍ମ ଅଭାବ ଅଧମ
୪ ଧମନୀ ଘୋଟିଯାଇ ଧୀରେ ଧୀରେ ଗ୍ରାସଇ
ଉଦ୍ଧାର ଏଥର ଅପଣ ହେ
ଯତ୍ର ସର୍ଜନା ପତ୍ର ତବ, ନିରଧାର ଯଦ୍ୟପି ହେବ
ଅଧୀଶ୍ୱର ହୋଇଣ ଅସ୍ୱୀକୃତ କପଣ
ଅସ୍ୱୀକାର ନିନ୍ଦିତ ତ୍ରାଣ ହେ ସୀତାରାମ । ୭୪ ।
ଜମ୍ବୁ ୫ ସବଟାକୁଳ କଲପତରୁ-ତୁଳ
କୋଶଳ କ୍ଷେମାଙ୍କ ଦୁଲ୍ଲାଳ
ବଳୀ-ବଳ ସକଳ ତବ ଚରଣେ ଠୁଳ
ହେଲା ନ ହେଉ ଅଦମ୍ଭୂଳ ହେ
କଳୟ କଳପେ ମୋ ଜୀବ, ୬ଜଳଜାତ ପୃଷ୍ଠରେ ଠାବ
ଛଳାଞ୍ଜଳି ମୋହର ଦେନ କମଳକର
କ୍ଷମାକର ମୋ ୭ ଦୋଷଜାଳ ହେ ରଘୁନାଥ ।୭୫।

---

୧ ଯମଦୋଷନା ୨ ଅଟ୍ଟାଳିକା, ୩ ଲୋଡା, ୪ ଅଙ୍ଗର ଶିର, ୫ ସୂର୍ଯ୍ୟବଂଶ, ୬ ପଦ୍ମପାଦରେ, ୭ ଦୋଷସମୂହ

ଲେଖକଙ୍କ ଅନ୍ୟାନ୍ୟ ବହି—

| | |
|---|---|
| କମଳନୀ କଣାଣ ଓ ହଂସଦୂତ | ଠ ୦ / |
| ଦେବୀସୂକ୍ତ | ଠ ୦ ୬ |
| ଅମୃବୋଧ | ଠ ୦ / |

---